ଗୀତିକାବ୍ୟ

# ଋତୁବିନୋଦ



ଗୋପାଳ ଛୋଟରାୟ

ପ୍ରକାଶକ :

ଅଭିରାମ ମହାପାତ୍ର

**ଗ୍ରନ୍ଥ ମନ୍ଦିର**

ବିନୋଦବିହାରୀ, କଟକ-୨

ମୁଦ୍ରକ :

ହୀରା ପ୍ରିଣ୍ଟିଂ ଓ୍ୱାର୍କସ୍

ଖୋଲ୍ଲ ସାହି, କଟକ-୧

ପ୍ରଥମ ମୁଦ୍ରଣ : ୧୯୮୮

ମୂଲ୍ୟ : ଟ ୪.୦୦

# ଚଂପୂବିନୋଦ

[ଗୋପନଗରରେ ଶ୍ରୀରାଧାଙ୍କ ପ୍ରାସାଦର
ଏକ ଅଂଶ । ବ୍ୟଥାତୁର ଅବସ୍ଥାରେ
ଶ୍ରୀମତୀ ପ୍ରତୀକ୍ଷା କରିଥାନ୍ତି ।]

ରାଧା : (ମନକୁମନ) କ'ଣ କରିବି ମୁଁ ? କାଲି ସେତିକବେଳୁଁ ଏଯାଏ ମନ ଭିତରେ ସବୁ କଥା ଗୁପି ଗୁପି ରଖିଥିଲି । ଆଉ ପାରୁନାହିଁ ।···କାହିଁ, ଲଳିତା ଗଲା କୁଆଡ଼େ ? ସବୁବେଳେ ଛାଇପରି ମୋ ସାଙ୍ଗେ ସାଙ୍ଗେ ଥାଏ— ଆଜି ଯେତେବେଳେ ଭିତରେ ଭିତରେ ମୁଁ ଜଳିପୋଡ଼ି ମରୁଚି ତା'ର ଦେଖା ନାହିଁ । ଲଳିତା ବିନା ତ ଆଉ କାହା ଆଗରେ ମୋ ମନକଥା ମୁଁ ଖୋଲି କହି-ପାରିବି ନାହିଁ । ବଂଶୀ ଏବେ ବାଜୁଚି କି ନାହିଁ ମୁଁ ଜାଣେନା । ମାତ୍ର ଯମୁନା କୂଳ କଦମ୍ବ ତଳର ବଂଶୀସ୍ୱନ ଯେମିତି ମୋର ଏ ଅନ୍ତଃପୁରକୁ ଭାସିଆସି ମୋ ଚିତ୍ତ କରିଡି ଦଉଚି ।···ଏଇ, ଲଳିତା ଆସୁଚି ! ସିଏ କେମିତି ଜାଣିବ, ମୁଁ ଗୃତକ ପରି ତା' ବାଟ ଚାହିଁବସିଚି ! (ପ୍ରାସାଦର ଅନ୍ୟ ଅଂଶରେ ଲଳିତା ଆସୁଥାଏ ।)

ଲଳିତା : (ମନକୁମନ) ଏଁ ··· । ଏ କ'ଣ ? ମୋ ପ୍ରାଣର ସଖି ମୋ' ନୟନ ପ୍ରତିମା ଶ୍ରୀରାଧା ଏମିତି ଆକୁଳ ନୟନରେ ଗୁହାଁରହିଚ କାହାଁକି ? ଏଇଠୁ ଥାଇ ମୁଁ ଜାଣିପାରୁଚ, ଆଖି ଲୁହ ଛଳ ଛଳ—ମୁହଁ···ନା, ମୁଁ ଏଠି ଉଚ୍ଛା-ଳରେ ଥାଇ ଟିକେ ଦେଖେଁ ।

ରାଧା : ଏଁ ! ଆସୁଥିଲ, ପୁଣି କୁଆଡ଼େ ଛପିଗଲ ? କାଇଁ, କୋଉଠି ତ ଦଶୁନାଇଁ ! ଗଲ କୁଆଡ଼େ !

ଲଳିତା : (ମନକୁମନ) ନା, କଣ୍ଟୁ ଗୋଟାଏ ତାର ହେଇଚ । ମୁଁ ଯାଏଁ । (ଲଳିତା ଆସିଲ)

ରାଧା : ଲଳିତା ! ତୁ ଆସିଲୁ ଲଳିତା !

ଲଳିତା : ମୁଁ ତ ଆସୁଚ ।

ରାଧା : ଲଳିତା···

ଲଳିତା : କ'ଣ ହେଇଚ ଲେ ରାଧା, କ'ଣ ତୋର ହେଇଚ ?

ରାଧା : ମତେ ଦେଖି ବୁଝିପାରୁନୁ କ'ଣ ମୋର ହେଇଚ ?

ଲଳିତା : ଏମିତି ଦେଖି କେହି ଭଲ କେବେ ବୁଝିପାରିବ ଯେ କାହାର କ'ଣ ହେଇଚ ? ତୁ ତ ମତେ ଦେଖୁଚୁ, କହିଲୁ ମୋର କ'ଣ ହେଇଚ ?

ରାଧା : କ'ଣ ହେଇଚ ?

ଲଳିତା : ମୁଁ ଉଆସ ଭିତରକୁ ଆସୁଚ । ତୋ ନଣନ୍ଦ କୁଟିଳା— ତା ଗୋଡ଼ ଖସିଗଲ—ସେ ପଡ଼ିଗଲ । ମୁଁ କି ଦୋଷ କଲି ଯେ ସିଏ ମତେ ଗାଳି ଦଉଚ !!

ରାଧା : (ଭଙ୍ଗିପଡ଼ି) ନାଇଁ ଲଳିତା, ଏ ସବୁ କଥା କହିବାର ବେଳ ଏ ନୁହେଁ । ତୁ—ତୁ ମତେ କହ···

ଲଳିତା : ରାଧା ! ମୋ' ସୁନା—ମୋ ଲକ୍ଷ୍ମୀ । ତୁ ଆଗେ ମୋ କୋଳକୁ ଆଉଜି ବସ । ହଁ କହିଲୁ—ତୋର କ'ଣ ହୋଇଚି ?

ରାଧା : ମୋର···ନାଇଁ ଲଳିତା, ମୁଁ କିଛି କହିପାରୁନି, କିଛି କହିହଉନି···

( ଗୀତ )

ରାଧା କି ହୋଇଲରେ, କହି ତ ନୁହଇ ସରଣିରେ
କାଲି ଯା ଦୂରରୁ ଦେଖି, କଲନା କଲି ମୋ ଆଖି
କଳା ଇନ୍ଦୀବର ଆରତିରେ । ପଦ ।

ଲଳିତା : (ଆଶ୍ଚର୍ଯ୍ୟରେ) କଳା···ଇନ୍ଦୀବର !!

ରାଧା : ହଁ ସଖି !

( ଗୀତ )

ରାଧା : କେଳି କଦମ୍ବ ଲତାର କୋଳେ କି ଶ୍ୟାମଲତାର
ତେଜ ସେ ରବିସୁତାର ଶିରେ
କମ୍ପି ମୋର କଳେବର ହୋଇଗଲା ଆରପାର
ଯାହାକୁ ଓରଇ ତା'ର ଶିରେ । ୧ ।
କି ମିତ୍ର କି ଜାତିଶୀଳ କି କୁଳବରତ ଫଳ
ଠଉର ପାଉଁଲି ମୋ' ମତିରେ ?
କୋମଳତର ମୋହନ କୁଞ୍ଜକୁକ୍ଷିରୁ ନିଃସ୍ୱନ
ଆସି ଚୁମ୍ବି ଦେଲା ମୋ' ଶ୍ରୁତିରେ । ୨ ।

ଲଳିତା : ତା'ହେଲେ ତୁ କାଲି ଏକୁଟିଆ ଯମୁନା କୂଳକୁ ଯାଇଥିଲୁ ?

ରାଧା : ହଁ... !

ଲଳିତା : ଏବେ ଗୋପପୁରରେ ଯେଉଁ ନୂଆ ନାଗର ଖେଳ-ବୁଲୁଚନ୍ଦ୍ର, ନଟବର ଶ୍ରୀକୃଷ୍ଣ, ଯାହାଙ୍କ ପାଇଁ ଗୋପର ଗୋପୀମାନେ ପାଗଳିନୀ ହେବାକୁ ବସିଲେଣି, ତାଙ୍କର ସାଙ୍ଗରେ ତୋର ଭେଟ ହେଇଗଲା ?

ରାଧା : ହଁ, ତାଙ୍କର ସାଙ୍ଗରେ ।

ଲଳିତା : ତୁ ତାଙ୍କ ଆଡ଼କୁ ଚାହିଁରହିଲୁ ?

ରାଧା : ହଁ ଲଳିତା ।

ଲଳିତା : ତ୍ରିଭଙ୍ଗୀ ଠାଣି, ମୂରଲୀପାଣି, ମଥାରେ ମୟୂରପୁଚ୍ଛ ?

ରାଧା : ସବୁ ଠିକ୍ ।

ଲଳିତା : ହୁଁ ।

ରାଧା : କାଲି ସେତିକବେଳୁ ମୁଁ ଆଉ ମୋ ନିଜ ଆୟତ୍ତରେ ନାହିଁ । ମୋର ବେଶଭୂଷା ଖାଇବା ପିଇବା ଶୟନ ସ୍ୱପନ ସବୁ ତୁଚ୍ଛ ହୋଇଗଲାଣି । ବଂଶୀ ବାଜୁ କି ନବାଜୁ ମୋ' ଚିତ୍ତ କରିତ ହୋଇଯାଉଚି । କେମିତି ମୁଁ ତାଙ୍କୁ ପାଇବି !

ଲଳିତା : ହୁଁ !!

ରାଧା : ଲଳିତା... ! ...ଲଳିତା...

ଲଳିତା : ମୁଁ ତ ଏଇଠି ତୋ ପାଖରେ ଠିଆ ହେଇଚି, ତୁ ଏମିତି ଲଳିତା ଲଳିତା ଡାକ ଛାଡ଼ୁଚୁ କାହିଁକି ?

ରାଧା : ତୁ କ'ଣ ମୋ କଥା କିଛି ବୁଝିପାରୁନୁ ଲଳିତା ?

ଲଳିତା : ନାଇଁ ।

ରାଧା : ମତେ ଦେଖି ମୋ' କଥା ଶୁଣି କହୁ ଜାଣିପାରୁନୁ ?

ଲଳିତା : ନାଇଁ ।

ରାଧା : କହୁ ?

ଲଳିତା : ଓ !···କହୁ ?

ରାଧା : ହଁ !

ଲଳିତା : ଜାଣୁଚ ଖାଲି ଗୋଟିଏ କଥା ।

ରାଧା : (ଆଗ୍ରହରେ) କ'ଣ ସହି—କ'ଣ କି କଥା ?

ଲଳିତା : ( ଗୀତ )

ଖରୂପ ତୁ ହେଲୁରେ,
ଖେଳନ୍ଲୋଳଖଞ୍ଜନାକ୍ଷି କି ସାହସ କଲୁ ରେ । ପଦ ।
ଖର୍ବ ହୋଇ ସୁରତରୁ କୁସୁମ ବାଞ୍ଛିଲୁ ରେ
ଖେଦବୀଜ ନିଜ ହୃଦ କେଦାରେ ରୋପିଲୁ ରେ ।୧।

ରାଧା : ଲଳିତା, ଏସବୁ ତୁ କ'ଣ କହୁଚୁ ?

ଲଳିତା : ( ଗୀତ )

ଖାଇଦେଇ କି ଅମଳ ଅଚେତା ହୋଇଲୁ ରେ
ଖାର ଖଣ୍ଡା ଧାରେ ଖଟ ବଗୁର ଶୋଇଲୁ ରେ ।୨।

ରାଧା : ତୁ ମୋର ଅନ୍ତରଙ୍ଗ ପ୍ରିୟ ସଖି ବୋଲି ସବୁକଥା ଏକାନ୍ତରେ କହିଲି ଯେ······

ଲଳିତା : ଶ୍ରୀମତି ଲୋ ! ତୋ' ଆଖିରେ ମୁଁ ସିନା ତୋ ଅନ୍ତରଙ୍ଗ ସଖି, ମୁଁ ତ ମୋ' ଜୀବନଟାକୁ ତୋ' ଜୀବନ ସାଥିରେ

ଛନ୍ଦ ଦେଇ ଆଗେ ଆଗେ ଗୁଳଚ । ଆକାଶରୁ ବଜ୍ର ପଡ଼ିଲେ ଆଗେ ମୋ ଉପରେ ପଡ଼ିବ । ମୁଁ ସେମିତି ଏକାନ୍ତରେ ପଶୁରୁଛ, ଏ ବୁଦ୍ଧି ତୋତେ କିଏ ଦେଲା ?

ରାଧା : ମୁଁ ତ କିଛି ମନ୍ଦ ବୁଦ୍ଧି ଧରିନାଇଁ ଲୋ ଲଳିତା !

ଲଳିତା । ଧରିନୁ··· ?···ଶୁଣ ! ତୁ ସାପୁଆକେଳା ନୋହୁଁ । ମାତ୍ର କଳାନାଗକୁ ଆଣି ତୋ' ହୃଦ ପେଡ଼ିରେ ସାଇତି ରଖିଲୁଣି । ଧାରୁଆ ଖଣ୍ଡାଧାରକୁ ତୁ ଭାବୁଚୁ ତୂଳତଳ୍ପ ଶେଯ—ତା' ଉପରେ ଶୋଇବାକୁ ଯାଉଚୁ !

ରାଧା ଲଳିତା !

ଲଳିତା : ଥାଉ । ତୁ ମତେ ଆଉ ଡାକନା କି ଆଉ କିଛି କହନା ।

ରାଧା : (ଟିକିଏ ରହି) ହଉ···ତୁ ମତେ ଏଇ ଯୋଉ ସବୁ କଥା କହିଗଲୁ, ସେ କଥା ତ ଗୋପପୁରରେ ଯିଏ ପାରି ଯିଏ ମତେ କହିଥାନ୍ତି—ତୁ ଆଉ ଅଧିକ କ'ଣ କଲୁ ? କାଲି ଯେତେବେଳେ କଦମ୍ବ ମୂଳରେ ସେଇ ଲାବଣ୍ୟମୟ ମୂର୍ତ୍ତି ମୁଁ ଦେଖିଲି, ମୋ ଦେହ ଥରଥର ହୋଇ କମ୍ପି ଉଠିଲା । ମୋ ଉପରେ ତାଙ୍କ ଆଖି ପଡ଼ିବା ପୂର୍ବରୁ ମୁଁ ପଳାଇଆସିଲି । ଏଠି ଆତୁର ହୋଇ, ବିକଳ ହୋଇ ତୋ' ପାଖରେ ମୋ' ହୃଦୟ ଖୋଲିଦେଲି କ'ଣ ତୋଠୁଁ ଏଇ ଗଞ୍ଜଣା, ଏଇ ଧିକ୍କାର ପାଇବାକୁ ?

ଲଳିତା : ମୋ' ଧିକ୍କାର ତୋତେ ବାଧୁଚି ?

ରାଧା : ଲଳିତାର ଧିକ୍‌କାର ରାଧାକୁ ବାଧିଲେ ଏ ଗୋପପୁରରେ ସ୍ନେହ—ସୁହାଗ ବୋଲି କିଛି ରହିବ ନାହିଁ ।... ହେଲେ ଯିଏ ଧିକ୍‌କାର ଦିଏ ସିଏ ତ ପୁଣି ହାତଧରି ବାଟ ଦେଖାଏ ।

ଲଳିତା : କ'ଣ ତୁ କହୁଚୁ ?

ରାଧା : (ଅଭିମାନରେ) ତୁ ତ ମତେ ମନାକଲୁ ଆଉ କିଛି କହିବା ପାଇଁ ।

ଲଳିତା : (ଭୟରେ) ହଉ, କହ କ'ଣ କହୁଚୁ ।

ରାଧା ( ଗୀତ )

ଗଲିଣି ତ ଗଲା କଥାରେ ସଂଗାତ, ଗଲିଣି ତ ଗଲା କଥା
ଗୁପତେ ସିନା ମୁଁ ତୋତେ ପଚାରିଲି ବଳପଡ଼ିବାରୁ ବ୍ୟଥା ।୦।

ଗଙ୍ଗାରୁ ବଳିବ ଗଭୀର ତୋ' ହୃଦ ଗଣ୍ଠିଧନ ତୋର ସ୍ନେହ
ଗୋଡ଼ ଖସି ଖେଦ ହେବାର ଦରଦ ଯିବାର ଉପାୟ କହ ।୧।

ଲଳିତା : ରହିଲୁ ରହିଲୁ ! କ'ଣ ସବୁ ତୁ ଏତେ କଥା କହି-ଯାଉଚୁ ? ମୋ ହୃଦୟ ଗଙ୍ଗାରୁ ବଳି ଗଭୀର—ତୋ' ପାଇଁ ମୋ ସ୍ନେହ ଭଣ୍ଡାର ଉଛୁଳିପଡ଼ୁଚି !! ମାନିଲି, ଏସବୁ ସତ, ହେଲେ ତୁ ମତେ ଏମିତି ପଟାପଟି କରି ତୋ' କାମ କରେଇନବୁ !! ହୋଇପାରିବ ନାଇଁ ।

ରାଧା : ସଖି, ଯାହା ଘଟିଯାଇଚି ସେଥିପାଇଁ ତୁ ମତେ ଆଉ ଦୋଷ ଦେ'ନା । ମୋ କଥା ଶୁଣ ।

( ଗୀତ )

ଗଞ୍ଜାଇ କି କଣି ଲାଗି ତା'ର ପୁଣି ରଞ୍ଜାଇଲା ମନେ ଝଳି
ଗୋଲା ଗରଳରୁ କଷ୍ଟ ପୀୟୂଷରୁ ସ୍ୱାଦଗୁଣ ଗଲା ବଳି ।୨।
ଗଗନ କୁସୁମ ପରି ଏଥି ଶ୍ରମଫଳ ହୋଇବ କି କାଳେ
ଗୋଳଆ ନରଖି କହ ଚନ୍ଦ୍ରମୁଖି ଗହଳ ନଥିବା ବେଳେ ।୩।

ଲଳିତା : ତୋ' କଥା ସରିଲା ?

ରାଧା : ତୋ' ମୁହଁରୁ ମଧୁର କଥା ପଦେ ନଶୁଣି ମୋ' କଥା ତ ସରିବ ନାହିଁ । କହୁଚି ତ, ମୋ ପାଦ ଖସିଯାଇଚି । ସେଇଥିପାଇଁ ତୋ' ପାଖରେ ହାତପାତି ଠିଆହୋଇଚି । ତୁ ମୋ ହାତ ଧରି ସେ ଖସଡ଼ା ପଥରୁ ଉଦ୍ଧାର କରି ମତେ ନେଇଚାଲ ।

ଲଳିତା : କୋଉଠିକି ?

ରାଧା : ସେଇ ବୃନ୍ଦାବନ—ଯମୁନାତଟ—କଦମ୍ବତଳକୁ ।

ଲଳିତା : ଆଉ ଯୋଉଦିନ ଆମେ ଅଷ୍ଟସଖି ତୋତେ କହୁଥିଲୁ—ରାଧେ, ଏବେ ବୃନ୍ଦାବନରେ ନଟବର ନାଗର କିଶୋରଚନ୍ଦ୍ରଙ୍କ ଲୀଳା ଆରମ୍ଭ ହୋଇଗଲାଣି, ତୁ ଆଉ ତେଣିକି ପାଦ ବଢ଼େଇବୁ ନାଇଁ—ଆମର ସେ କଥା ତ ତୋ'ର ଏ କାନରେ ପଶି ସେ କାନରେ ବାହାରିଗଲା ।

ରାଧା : ମୁଁ ଆଉ କ'ଣ କରିଥାନ୍ତି ମତେ କହ ଲଳିତା ?

ଲଳିତା : ଯାହା କହିବାର କଥା ସେଦିନ ସବୁ କହୁଚି—

( ଗୀତ )

ଯେନାଇ ଆମ୍ଭେ ଯେତେ କହିଲୁ ରେ
ଯେନଲୁ ନାହିଁ ବାଳା ଚହିଲୁ ରେ ।
ଘୃତ ଘଂଟକୁ ଶିଖ-ଶିଖା ପାଖରେ ରଖି
ଶିଖିଷଦେହା ଏହା ସହିଲୁ ରେ । ପଦ ।

ଲଳିତା : କଣ, ଏସବୁ କଥା ମନେପଡ଼ୁଛି, ନା ସବୁ ଭୁଲି-
ଗଲୁଣି ?

( ଗୀତ )

ଯେନ ଯେନାଇ ଯାଇ କହିବା ସମଜାଇ
ଘଟିଲେ ଆମ୍ଭେ ଏକା ଖାଇଲୁଁ ରେ
ଘଟନା ବରହରେ ଅବଶ୍ୟ ତ ଜହରେ
ତୋ' ଯେନ ଆମୃଘାଣି ହୋଇଲୁ ରେ ।୧।

ରାଧା : ଲଳିତା, ତୁ ଏଠ ଅଛୁ—ତୋ' କଥା ମୁଁ ସବୁ ଶୁଣିଛି
—ତୋ' ମୁହଁକୁ ମୁଁ ଗୃହିଁ ରହିଛି । ଆଉ ତୋ'ର
ଏଇ ମନଲେଖା ମୁହଁ ଭିତରୁ ଉଇଁଆସୁଛି କୃଷ୍ଣଚନ୍ଦ୍ରଙ୍କ
ମୁଖଚନ୍ଦ୍ରମା ।

ଲଳିତା : (ହସିଉଠି) ରାଧା !

ରାଧା : ତୁ ହସିଲୁ ତ ! ମୁଁ ଜାଣିଲି ମୋର ଆଉ କିଛି ଦୁଃଖ
ରହିବ ନାହିଁ ।

ଲଳିତା : ଆଉ ମୁଁ ଜାଣୁଛି, ତୁ ରସରାଜଙ୍କୁ ପାଇଲେ ମତେ
ଗୋଟାପଣେ ଭୁଲିଯିବୁ ।

ରାଧା : (ଚିକିଏ ରହି) ଲଳିତା !

ଲଳିତା : କ'ଣ ହେଲ ?

ରାଧା : ବ୍ରଜବାସୀ ସମସ୍ତେ ଜାଣନ୍ତି, ତୁ ମୋର ପ୍ରାଣର ସଖୀ । ହେଲେ ଏ ବ୍ରଜେଶ୍ୱରୀ ଜାଣେ, ତୁ ମୋର ସାରା ଜଗତ । କୃଷ୍ଣ ହେଉଚନ୍ତି ଜଗତ ସାଇଁ । ମୁଁ ତୋତେ ଛାଡ଼ିଲେ ତାଙ୍କୁ ପାଇବ କେମିତି ?

ଲଳିତା : ତୋ' ଭିତରେ ତୋ' ନିଜର ହେଇ ଆଉ କିଛି ନାହିଁ ରାଧିକା, ସବୁ ତୁ ତାଙ୍କ ପ୍ରେମ ସାଗରରେ ଭସାଇ-ଦେଲୁଣି । ତୋର ଏ ପ୍ରେମର ମହିମା ଯୁଗଯୁଗକୁ ବ୍ୟାପି ରହିବ । ଏଇ ଆଶା କରି, ମୁଁ ହସହସ ମୁହଁରେ ତୋ'ର ଦୂତୀ ସାଜି ବୃନ୍ଦାବନଚନ୍ଦ୍ରଙ୍କ ପାଖକୁ ଯାଉଚି ସଖୀ, ତୁ ଅପେକ୍ଷା କର । (ଲଳିତାର ପ୍ରସ୍ଥାନ)

---

[ ଶ୍ରୀରାଧାଙ୍କ ପରି କୃଷ୍ଣ ସେମିତି ବ୍ୟଥାତୁର ଅବସ୍ଥାରେ ଅପେକ୍ଷା-ରତ । ସ୍ଥାନ—ବୃନ୍ଦାବନ ]

କୃଷ୍ଣ : ସେଇଦିନଠୁଁ ଆଜି ଏ ପର୍ଯ୍ୟନ୍ତ ସେଇ ଗୋଟିଏ ମୁହଁ—ଗୋପପୁରର ବଲ୍ଲଭୀ ଶିରୋମଣି ବୃଷଭାନୁ ଜେମା ରାଧିକାର ସେଇ ଦରବିକଶିତ ଶ୍ୱେତ କମଳ ପରି ମୁଖଶ୍ରୀକୁ ଦେଖି ମୁଁ ସବୁ ଭୁଲିଯାଇଛି । ଏ ବୃନ୍ଦାବନର ଶୋଭା, ଧବଳୀ ଶ୍ୟାମଳୀ, ମୋର ପ୍ରିୟ ସଖା ସୁଦାମ ସୁବଳ ମଧୁମଙ୍ଗଳ—ଏ ଯମୁନା, ଏ କଦମ୍ବ, ମୋ ହାତର ଏ ବେଣୁ—ମୁଁ ସବୁ ଭୁଲିଯାଇଛି । ଏଭଳି ଭାଗ୍ୟହୀନ ମୁଁ, ଚନ୍ଦ୍ରପ୍ରାପ୍ତିର ଆଶା କରି ବସିଛି । (ଦୀର୍ଘଶ୍ୱାସ···ଲଳିତା ଆସିଲା)

ଲଳିତା : ଆହା—ହା—ହା ! ଇଏ ତୁମର କ'ଣ ହେଲା କୃଷ୍ଣଚନ୍ଦ୍ର ?

କୃଷ୍ଣ : ଏଁ ! ଲଳିତା—(ଆବେଗରେ) ଲଳିତା ତୁମେ ! !

ଲଳିତା : ହଁ ଗୋପେନ୍ଦ୍ର, ମୁଁ ! ଆଉ କେହି ନୁହେଁ—ଶ୍ରୀରାଧାଙ୍କ ପ୍ରିୟ ସଖୀ ଲଳିତା ।···ତମର ଏ କି ଅବସ୍ଥା ହୋଇଛି କାହିଁକି ?

କୃଷ୍ଣ : ନାଇଁ ତ, ନାଇଁ—ମୋର ସେମିତି କିଛି ହୋଇନି—କ'ଣ ତୁମେ କହୁଚ ? (କୃଷ୍ଣ ଯେପରି ନିଜ ଅବସ୍ଥା ଲୁଚେଇବାର ଚେଷ୍ଟା କରୁଚନ୍ତି)

ଲଳତା :  ( ଗୀତ )

ନୂଆନଟପଟଲୀମୁକୁଟ ହେ, ନାହିଁକ ଶ୍ରୀଅଙ୍ଗ ସୁଖ
ନପଟ ନସ୍ତେଜ ଦିଶୁଚ ତ ଆଜ ନରଳସ ଚନ୍ଦ୍ରମୁଖ ।୦।
ମାଳୋପ୍ରୀଳ ବାସି ହେଲ୍ଲପର ଦିଶିଯାଉଚ ଦୂରୁ ଶ୍ରୀଅଙ୍ଗ
ନାସା ମାଳା ତିଳଫୁଲରୁ ଅନଳ ପ୍ରସରୁଛୁ ବେଗ ବେଗ ।୧।

କୃଷ୍ଣ : ନାଇଁ ଲଳତେ···

ଲଳତା : ଆହା, ଲୁଚଉଚ କାହିଁକ ?

କୃଷ୍ଣ : କଅଣ ଲୁଚେଇଲ ସଖୀ ?

ଲଳତା : ମୁଁ ଯେତେବେଳେ ଏଠିକ ଆସିଲ, ତମର ଘନ ଘନ ନଃଶ୍ୱାସ ଛୁଟୁଥିଲ—ଗ୍ଭତ ପଡ଼ୁଥିଲ ଉଠୁଥିଲ··· ! କୁହ, ମୁଁ ମିଛ କହୁଚ ?

କୃଷ୍ଣ : ତୁମେ—ତୁମେ ଏଠିକ ଆସିଲ ଲଳତା, ମୁଁ କେତେ ଖୁସି !

ଲଳତା : ମାତ୍ର ତମ ଅବସ୍ଥା ଦେଖି ମୁଁ ମୋଟେ ଖୁସି ନୁହେଁ । ତୁମେ ଏ ଅଭ୍ୟାସ ଛାଡ଼ । ଏ ବୃନ୍ଦାବନ ସ୍ଥଳ ଭଲ ଜାଗା ନୁହେଁ । ତୁମେ ଆଉ ଏଠିକ ଆସନାଇଁ । ଏ ଯମୁନା ନଈକୂଳ ଥଣ୍ଡାପବନ ତମ ଦେହରେ ମୋଟେ ଯାଉନ । ସତ କହିଲ, କାଲ ରାତିରେ ଶୋଇଚ ?

କୃଷ୍ଣ : କାଲ ରାତି···

ଲଳତା : ଜାଣେ, ଶୋଇନ ।

( ଗୀତ )

ଜଦ ନାହିଁକ ନଘୁନେ ନଶିଦନ ଆହା ମରଇ ମୋ ଧନ
ନବନୀତ ତନୁଁ ମୃଦୁ ଦେହେ କାହୁଁ ସମ୍ଭବିଲା ଏ କଦନ ।୨।

କୃଷ୍ଣ : ନାଇଁ ଲଳିତେ, ମୋର ସେମିତି କିଛି ହୋଇନି—
ତମେ ମତେ ଭଲକରି ଟିକେ ଚାହିଁ ଦେଖିଲ ।

ଲଳିତା : ଆଉ କେମିତି ଦେଖିବି ? ମୁଁ ଏଠିକି ଆସିଲାବେଳେ
ତମେ ପରି ଆଖି ବୁଜି ଛଟପଟ ହେଉଥିଲ । ତମେ
ମତେ ଦେଖିବା ଆଗରୁ ମୁଁ ତମକୁ ଦେଖିଲି ।

କୃଷ୍ଣ : ତମର ନିଶ୍ଚୟ ଭ୍ରମ ହୋଇଚି ଲଳିତା । ତମେ ଆଉ
ଥରେ ମତେ ଭଲକରି ଚାହିଁ···ଦେଖ—ମୋ ଦେହ
ସେମିତି କିଛି ହୋଇନି ।

( ଗୀତ )

ଥେତାଥିଲା ପରି କିଛି ପ୍ରଣିତ ତ ହେଉଅଛି
ଶିଳ୍‌କଣ ତ ଦିଶୁଛି ମୋ' ଦେହ
ଶିହ୍ନିକ ଲାଞ୍ଛନ ସତେ ଗୁମରଶିକୁରି ମତେ
ତହିଁକାଇ ପଶୁଛିଲୁ କହରେ, ଚଲାପାଙ୍ଗି,
ଚୁମ୍ବି ରବିନନ୍ଦନାର ଜାର ଚନ୍ଦ୍ରକାଚସ୍ତୁ ଭୁଷାର ସାର
ଗୃହୁ ମାରୁତରୁ ତରୁତଳ ଶୀତଳ ହେଉଛୁ
ଶନାଏ ତ ଖେଦ ନାହିଁ ମୋର ରେ ।୧।

କୃଷ୍ଣ : ଜାଣ ଲଳିତା, ଏ ଯମୁନାକୂଳ ଥଣ୍ଡାପବନ ଯୋଗୁଁ
ମୋର ଟିକିଏ ହେଲେ ଦୁଃଖ ନଥିଲା ।

ଲଳିତା : କାହିଁକି ?

କୃଷ୍ଣ : ଜଣେ ଯେତେବେଳେ ଆଉ ଜଣକ ଆଶାରେ ବସିରହି ନିଜ କଥା ସବୁ ଭୁଲିଯା'ଇଥାଏ, ତା'ର ଦୁଃଖ କରିବାକୁ ବେଳ କାହିଁ ?

ଲଳିତା : କିଏ ସେ ଆଉ ଜଣକ ?

କୃଷ୍ଣ : ତୁମେ ଲଳିତା, ତୁମେ ।

ଲଳିତା : ମୁଁ !

କୃଷ୍ଣ : ହିଁ ।

( ଗୀତ )

ଚାହିଁ ଚାହିଁ ତୋ' ସରଣୀ କଳ୍ପତରୁ ରେ ତରୁଣୀ
ଚିତାର୍ପିତ ପରି ଥିଲି ବସି
ଚିହ୍ନ ମଣିଲି ମୁଁ ତୋତେ, ଚାହିଁ ଯା' ଅନ୍ତରକୋତେ
ଗୁରିଚକ୍ଷୁ ମିଶାଇଲୁ ଆସିରେ, ଚଳାପାଙ୍ଗି
ଚନ୍ଦ୍ରରୁ ଚିପୁଡ଼ି ସୁଧା ଝରି ଚିରତୃଷିତର ମୁଖେ ଭରି
ଗୁଲୁର୍ଯ୍ୟ କୃପାଳୁ ଗୁଣ-ନିଧି ରଖିଲୁ କି ପ୍ରାଣ
ଦେଖିଲି ମୁଁ ଏତେ ସବ କରି ରେ ।୨।

କୃଷ୍ଣ : ସତ କହୁଛି ଲଳିତେ, ମୁଁ ଏଠି ତମର ବାଟ ଚାହିଁ-ବସିଥିଲି ।

ଲଳିତା : ତୁମେ, ନନ୍ଦନନ୍ଦନ ଶ୍ରୀକୃଷ୍ଣ ମୋ ବାଟ ଚାହିଁ ବସିଥିଲ ! ମୁଁ ମରିଯାଏଁଟି !...କହିବଟି, ମୋ'ଠି ତମର କି କାମ ?

କୃଷ୍ଣ : (ହଡ଼ବଡ଼େଇ) ଇଏ—ନାଇଁ ଲଳିତେ...

ଲଳିତା : ଏଇ, କଥା ଆରମ୍ଭରୁ ନାଇଁ ନାଇଁ ହେଲଣି, ଆଉ କହିବ କଣ ?

କୃଷ୍ଣ : ମୁଁ କହୁଥିଲି, ତମେ ତ ଏଠିକି ଆସିଲ, ଗୋପପୁର ସମ୍ବାଦ କଣ ?

ଲଳିତା : ଗୋ-ପ-ପୁର ସମ୍ବାଦ !

କୃଷ୍ଣ : ଏଇ ଗୋପାଳମାନଙ୍କ ସମ୍ବାଦ ?

ଲଳିତା : କଣ କହିଲ, ଆଉଥରେ କହିବଟି ?

କୃଷ୍ଣ : ନାଇଁ, ଗୋପୀମାନଙ୍କ ସମ୍ବାଦ ।

ଲଳିତା : ହେ ଗୋପୀନାଥ—ହେ ଗୋପସୁନ୍ଦର ! ତୁମେ ମା' ଯଶୋଦାଙ୍କ ହାତ ପରଶା ସରଲବଣୀ ଖାଇ ବୃନ୍ଦାବନରେ ଆସି ମୁହଁ ପୋଛୁବା ଲୋକ, ତମକୁ ଗୋପପୁର ଏମିତି ଦୂର ହୋଇଗଲା ଯେ, ତୁମେ ଗୋପୀମାନଙ୍କ ସମ୍ବାଦ ମୋଠୁଁ ଶୁଣିବ ବୋଲି ମୋ ବାଟ ଚାହିଁ ବସିଚ !

କୃଷ୍ଣ : କଥା କଣକି, ମୁଁ ଗୋଟାଏ କଥା କହୁ କହୁ ଆଉ ଗୋଟାଏ କଥା ଆପେ ଆପେ କହିହୋଇଗଲା ।

ଲଳିତା : (ହସିହସି) ଏ-ମି-ତି ଆପେ ଆପେ କହି ହେଇଗଲା ! କେଜାଣି, ହେଇଥିବ ! ଯୋଉଗୁଡ଼ାକ ମିଛକଥା, ଛଳକଥା, ସେ ଗୁଡ଼ାକ ଏମିତି ଆପେ ଆପେ କହିହେଇଯାଏ କି କ'ଣ ?

କୃଷ୍ଣ : ଲଳିତା !

ଲଳିତା : (ହସିହସି)

( ଗୀତ )

ଛଳବାହ୍ମଣ ହେ, ଗ୍ରୁଡ଼ ଏ ସାହସ ହେ । ପଦ ।
ଛବ ତ ଆବଳ ଢଶେ, ଛପିବାର ଅଛୁ କ ସେ ।୧।
ଛଟା କାହା କଠାଷର, ଛୁଷ ହେଲ କ ବଷର,
ଛଳବାହ୍ମଣ ହେ···

କୃଷ୍ଣ : (ବାଧା ଦେଇ) ମୋ' କଥା ଶୁଣ ଲଳିତା—

ଲଳିତା : ଶୁଣିବ ? ହଉ କୁହ ।

କୃଷ୍ଣ : ଢନେ ବ୍ରଜଦାଣ୍ଡରେ ମୁଁ ଯାଉଚ, ଗୋଟିଏ ଦ୍ୱିତଳ ଇନ୍ଦ୍ରନୀଳମଣି ପ୍ରାସାଦ ଉପରେ ମୋ' ଆଖି ପଡ଼ିଗଲା । ଅତି ସୁନ୍ଦର ମନୋହର ପ୍ରାସାଦ । ଉପରେ ନୀଳବର୍ଣ୍ଣର ପତାକା ଉଡ଼ୁଚ । ମୁଁ ଦେଖୁଥାଏ, ହଠାତ୍ ମୋ ଆଖି ତଳ ମହଲର ଝରକା ପାଖକୁ ଚାଣି ହୋଇଆସିଲା । ଘର ଭିତରଟା ଯେମିତ ବିଜୁଳି ଆଲୁଅରେ ଝଲସି ଉଠିଲା । ମୋ ଆଖି ମୁଦହୋଇଗଲା !

ଲଳିତା : (ଛେପ ଢୋକ) ସେଇଠୁ ?

କୃଷ୍ଣ : ଆଖି ମେଲ ଦେଖିଲ, ଗୋଟିଏ ପରମା ସୁନ୍ଦରୀ ଯୁବତୀ ସେ ଘରୁ ଅନ୍ୟ ଘରକୁ ଗ୍ଲଲଯାଇଚ ।

ଲଳିତା : ତା' ଘର—ସିଏ ତା'ର ଏଘର ସେ ଘର ହେଲା, ସେଥିରେ ତମର କ'ଣ ଗଲା ?

କୃଷ୍ଣ : ମୋ ଦେହ କଥା ମୁଁ ଲୁଚଉଚ ବୋଲ ତମେ ମତେ ସେତେବେଳେ କହୁଥିଲ ନା ?

ଲଳିତା : ତୁମେ ସତରେ ତା' ହେଲେ ଲୁଚଉଥିଲ ?

କୃଷ୍ଣ : ହଁ, ତା'ର ସେ ମୁଖମଣ୍ଡଳ ମୁଖ ନୁହେଁ, ଚନ୍ଦ୍ରବିମ୍ବ । ନୟନ, ନୟନ ନୁହେଁ, ନୀଳପଦ୍ମ । ତାକୁ ଦେଖିଲା ପରଠୁଁ ମୋର ଏ ଅବସ୍ଥା । ଶୟନ ନାହିଁ, ଭୋଜନ ନାହିଁ, ବ୍ୟସନ ନାହିଁ । ବୃନ୍ଦାବନର ଶୋଭା, କଦମ୍ବର ବାସ, ସବୁ ମୋ ପାଇଁ ବିଷ ପରି—ସବୁ ତୁଚ୍ଛ ।

ଲଳିତା : (ମନକୁମନ) ହୁଁ ! ସେଠି ଇନ୍ଦ୍ରନୀଳମଣି ପ୍ରାସାଦରେ ଦେଖି ଆସିଲି ତା' ଅବସ୍ଥା ସେମିତି—ଏଠି ବୃନ୍ଦାବନ କୁଞ୍ଜବନରେ ଦେଖୁଛି ଯୁବା'ଙ୍କ ଅବସ୍ଥା ଏମିତି ।

କୃଷ୍ଣ : କ'ଣ ଭାବୁଚ ଲଳିତା ?

ଲଳିତା : କଣ ଆଉ ଭାବିବି କିଶୋରଚନ୍ଦ୍ର—ଏ ରୋଗ ଜାଣି ତ ଏମିତିକା । ଏଥିକି କାହାର ଆଉ କି ବଳ ଅଛି ? (ଲଳିତା ଯିବାକୁ ବାହାରିଲା)

କୃଷ୍ଣ : ଲଳିତା, ଲଳିତା ! ତୁମେ ଚାଲିଯାଉଚ କୁଆଡ଼େ ?

ଲଳିତା : ମୁଁ ତମର କାମରେ ଯାଉଚି ।

କୃଷ୍ଣ : (ଖୁସିରେ) ମୋ କାମରେ ! ମୁଁ ଜାଣେ ଲଳିତା, ମୋ' ପ୍ରତି ତୁମର ଏ ଅନୁଗ୍ରହ ରହିବ ।

ଲଳିତା : ନ ଖାଇ ନ ପିଇ କେତେଦିନ ରହିପାରିବ ! ମୁଁ ଯାଉଚି ମା' ଯଶୋଦାଙ୍କୁ କହିବି, ସେ ଆସି ତାଙ୍କ ଗେହ୍ଲା ନନ୍ଦନ କହ୍ନାଇଙ୍କ ଅବସ୍ଥା ନିଜ ଆଖିରେ ଦେଖନ୍ତୁ ।

କୃଷ୍ଣ : ଇଏ ତୁମେ କଣ କହୁଚ ଲଳିତେ !! ମା' ଯଶୋଦା କଣ କରିବେ ? ମୋ ଭାଗ୍ୟଡ଼ୋର ତମରି ହାତରେ ।

ଲଳିତା : ମୋ' ହାତରେ ? ଭଲ କଥା ତ ! କୋଉ ଇନ୍ଦ୍ର-ନୀଳମଣି ପ୍ରାସାଦରେ କାହାକୁ ଦେଖିଲ—ସେଥିପାଇଁ ଦାୟୀ ମୁଁ !!

କୃଷ୍ଣ : ତୁମେ କ'ଣ ଜାଣିନ ସେ କିଏ ?

ଲଳିତା : କେମିତି ଜାଣିବ ? ମୋର ଜାଣିବା ଦରକାର ବା କଣ ?

କୃଷ୍ଣ : ସେ ଆଉ କେହି ନୁହନ୍ତି ସଖି, ସିଏ ହେଉଛନ୍ତି ବୃଷଭାନୁ ରାଜଜେମା ବ୍ରଜେଶ୍ୱରୀ ଶ୍ରୀରାଧା ।

ଲଳିତା : ଓହୋ !!

କୃଷ୍ଣ : ଆଉ ତୁମେ ହେଉଚ ବ୍ରଜେଶ୍ୱରୀଙ୍କ ନର୍ମ ସହଚରୀ—ତାଙ୍କ ପ୍ରିୟମ୍ବାଦିନୀ ସଖି ଲଳିତା !

ଲଳିତା : ପ୍ରିୟମ୍ବାଦିନୀ !! କିଏ ? ମୁଁ ?

କୃଷ୍ଣ : ହିଁ ତ...

ଲଳିତା : ତା ଅର୍ଥ ମୁଁ ମିଠା ମିଠା କଥା କୁହେ ?

କୃଷ୍ଣ : ଗୋପନଗରୀରେ ଏକଥା ନ ଜାଣେ କିଏ ?

ଲଳିତା : ହେଇଟି, କୃଷ୍ଣଚନ୍ଦ୍ର, ସିଏ ଜାଣିବାର ଜାଣୁ—ତୁମେ ଏ କଥା ନ ଜାଣିଲେ ଭଲ ! ମୋ' ପାଟିରେ ପୁଣି ମିଠାକଥା !! ମୋ ପାଟିରୁ କେତେବେଳେ ଯେ କଣ ବାହାରେ !! ମୋ' ପାଟି ଉପରେ ସେଇ ଚତୁରୀ ରାଧିକା ଫଗ ବଦନଗତ ମତେ କରପଣ ଯୋଡ଼ି ରହିଥାଏ ।

କୃଷ୍ଣ : ଶୁଣ ଲଳିତା, ମୋର ଯାହା ଜାଣିବାର କଥା ମୁଁ ଜାଣିଚି ।

ଲଳିତା : କ'ଣ ଜାଣିଚ ?

( ଗୀତ )

କୃଷ୍ଣ

ଜାଣିଛୁ ମୁଁ ଏତେ ମାତ୍ର ଗୋ ଲଳିତେ
ଯାହା ଇଚ୍ଛା ତୋ'ର ତାହା କର
କ୍ଷୁଲନରୁ ବଳି ସେଇଦନୁ କେଳି
କରେ ବିଭ୍ରବଶିନାହାକର । ପଦ ।

ଜହରକୁ ଗୋଳି ଦେଲପରି ଗିଳି
ମୋହର ଦେହର ପୀଡ଼ା ଗଲା ବଳି
ଜୀବନାଶା ଠେଲି ଯାଉଅଛୁ କଳି
ପାରୁନାହିଁ ମୁଁ ମୋ' ହୃଦନ୍ତର । ୧ ।

ଲଳିତା : କଥା ଏତେଦୂର ଗଲାଣି ମୋହନ ? ବିଷ ଜହର ଖାଇଲେ ଲୋକର ଅବସ୍ଥା ଯାହା ହୁଏ, ସେ ସୁବର୍ଣ୍ଣ ପ୍ରତିମା ଟିକୁ ଦେଖିଲାପରଠୁଁ ତମ ଅବସ୍ଥା ଆସି ସେଇଆ ହେଲାଣି !

କୃଷ୍ଣ : ତା'ଠାରୁ ଅଧିକ ସଖି ।

ଲଳିତା : କଥା ଯାହା ଘଟିଯାଉଚି, ଏ ଗୋପପୁରରେ ଆଉ କେହି ଘରଦ୍ୱାର କରି ରହିବେ ନାହିଁ ।

କୃଷ୍ଣ : ସମସ୍ତେ ରହିବେ ପ୍ରିୟ ସଖି ଲଳିତା, ଶ୍ରୀରାଧାଙ୍କ ଦର୍ଶନ ନ ପାଇଲେ ଏକା ମୁଁ ରହିବି ନାହିଁ ।

ଲଳିତା : ମୁଁ ତୁମକୁ ଆକଟ କରି ଦେଉଚି ବଂଶୀଧର, ଏ କଥା ଆଉ ତୁମେ କୁହ ନାହିଁ ।

କୃଷ୍ଣ : ମୁଁ ତୁମକୁ କରଯୋଡ଼ି କହୁଚି ଲଳିତେ, ତୁମେ ତୁମର ଏ ନାସ୍ତିବାଣୀ ମତେ ଆଉ ଶୁଣାଅ ନାହିଁ ।

ଲଳିତା : କଣ ମତେ କହୁଚ ତୁମେ—କଣ ମୁଁ କରିବି ?

କୃଷ୍ଣ : ବ୍ରଜେଶ୍ୱରୀ ରହିଲେ ପ୍ରାସାଦରେ—ମୁଁ ରହିଲି ଏଠି ଏ ବୃନ୍ଦାବନରେ । ଆମ ଦୁହିଁଙ୍କର ଆଶାଭରସା ହଉଚ ତୁମେ । ତୁମେ ଶ୍ରୀରାଧାଙ୍କୁ ଏଠିକି ଅଣାଇ ଆମର ମିଳନ କରାଅ ।

ଲଳିତା : ରାଧା କୁଳର ବୋହୂ । ଶାଶୁ ନଣନ୍ଦ ନେଇ ଘର କରୁଛି । ତୁମର ଟିକିଏ ବୟସର ଆଗ୍ରହ ନାହିଁ, ଡରଭୟ ନାହିଁ ?

( ଗୀତ )

ଡର ନାହିଁକି ହେ, ପରତରୁଣୀ ହରଣୁ
ତୋର ଲାଗି ଯେବେ ପଡ଼ିବ ଯେ ହେବ
ବ୍ୟୈର ପର ଆଚରଣୁ । ପଦ ।

ତୋଲା ପ୍ରତିମାକୁ ପରାଏ ତୁମକୁ ଯଶୋଦା ଅଛନ୍ତି ପାଳି
ତୁଳିବଟି ଧନ କେଳିକ ମୋହନ ଲୋଡ଼ୁଚ ଯେ କୁଳ ପାଳି ।୧।
ତାକାଦେବାଦନେ ଅରିଷ୍ଟେ ତଣ୍ଡନେ ଦେଖିଛୁଁ ଶକଟା ଦଶା
ତାକମଧମାକୁ ତାକ ଆଣିବାକୁ ଏଠାକୁ କାହା ଭରସା ।୨।
ତାକ ତ ଜାଣ ମୋହନ ବଂଶୀରବେ, ବାହାର ସୁଖେ ଏ ବନେ
ତୁଇଁହେବୁ ସିନା ଆମ୍ଭେ ଫଳ ବନା,
ନ ପଡ଼ୁ ତା ଆମ୍ଭ କାନେ ।୩।

ଲଳିତା : ହାତରେ ତମର ବଂଶୀ । ବଂଶୀରେ ମୋହନ ସ୍ୱର ଫୁଙ୍କି ମନ କଣିନେବାରେ ତମେ ଧୂରନ୍ଧର । ତେମେ ତମ ବଂଶୀରେ ରାଧାକୁ ଡାକ । ବଂଶୀସ୍ୱନ ଶୁଣି ସେ ଚନ୍ଦ୍ରବଦନା, ମୃଗନୟନା, କଟିମଧ୍ୟମା, କୁନ୍ଦଦନ୍ତୀ ଚତୁରା ରାଧିକା ଏଠିକି ଆସୁ । ଏ ଯମୁନାକୂଳ କଦମ୍ବ ବନରେ ତେମେ ଦୁହେଁ ତମ ମନଇଚ୍ଛା ଖେଳୁଥାଅ, ବୁଲୁଥାଅ, ଡେଉଁଥାଅ—ମୁଁ ଏଥିରେ ନାହିଁ ।

କୃଷ୍ଣ : ନାଇଁ ସଖୀ, ଏ କୁଞ୍ଜ ବନରେ ସେ ବଧୂବଦନାର ଦର୍ଶନ ଟିକଏ ନ ପାଇବା ପର୍ଯ୍ୟନ୍ତ ମୁଁ ବଂଶୀରେ ସ୍ୱର ଫୁଟ୍କାର କରିପାରୁନ ନାହିଁ ।

ଲଳିତା : ତେମେ ତ ଇନ୍ଦ୍ରନୀଳମଣି ପ୍ରାସାଦ ଝରକା ସେ ପାଖରେ ସେ ସୁବର୍ଣ୍ଣ ପ୍ରତିମାର ଝଲକ ଟିକଏ ଦେଖିଲ । ହେଲେ ତାକୁ ତେମେ ଭଲକରି ଚିହ୍ନିଚ ? ତା' ଗୁଣଗ୍ରାମ ବୁଝିଚ ? ଜାଣିଚ ସେ କିଏ ?

କୃଷ୍ଣ : କିଏ ?

ଲଳିତା : ମାନିନୀ ! ଏମିତି ଅଭିମାନିନୀ ଯେ···

କୃଷ୍ଣ : ବୃଷଭାନୁ ଜେମାଙ୍କ ମାନଭଂଜନ ପାଇଁ ମୁଁ ତ ଏ ବୃନ୍ଦାବନରେ ଲୀଳା ବିସ୍ତାର କରିଛି ।

ଲଳିତା : ପଦେ କଥାରେ ତା' ଆଖିରୁ ଝର ଝର ହୋଇ ଲୁହ ବୋହିଯିବ ।

କୃଷ୍ଣ : ସୁନ୍ଦରୀମାନଙ୍କ ଲୁହଠୁଁ ବଳି ସୁନ୍ଦର ଜିନିଷ ଆଉ କଣ ଅଛି କହିଲ ଲଳିତା ?

ଲଳିତା : ଯା' ବୋଲି ଏମିତି ଲୁହ ବୋହି ଚାଲିଥିବ ?

କୃଷ୍ଣ : ଟୋପାଏ ଲୁହ ବି ତଳେ ପଡ଼ିବ ନାହିଁ । ସବୁ ମୁଁ ଏମିତି ମୋ' ହାତ ପାପୁଲିରେ ପୋଛି ନେଉଥିବି ।

ଲଳିତା : କୃଷ୍ଣ, ସଖି ମୋର କୁଳର ବୋହୂ !

କୃଷ୍ଣ : ହେଲେ ଏ ସଂସାର ଜାଣିବ ଯେ, ରାଧା ଠାକୁରାଣୀ ହେଉଛନ୍ତି ଗୋପନଗରର ଏକମାତ୍ର ଶ୍ରେଷ୍ଠ ନାରୀ ।

ଲଳିତା : ଭାରି ସୁକୁମାରୀ ସେ ! ଏ ବଣ ଜଙ୍ଗଲକୁ ସେ ଆସି-ପାରିବ ନାଇଁ ।

କୃଷ୍ଣ : ଇଏ ବଣଜଙ୍ଗଲ ନୁହେଁ ଲଳିତା, ଏହାର ସାକ୍ଷୀ ଦେବୀ ବୃନ୍ଦା । ଆମ ଦୁହିଁଙ୍କ ମିଳନ ପାଇଁ ସେଇତ ଏ ଲୀଳାଭୂମି ବୃନ୍ଦାବନକୁ ନିର୍ମାଣ କରିଛନ୍ତି । ଯୁଗଯୁଗ ପାଇଁ ଏ ଭୂମି ବୃନ୍ଦାବନ ଧାମ ହୋଇ ରହିଯିବ ।

ଲଳିତା : (ଖୁବ୍ ଚିଡ଼ିଯାଇ) ତେବେ ମୁଁ ଆଉ କଣ କରିବି କୁହ ! ତେମେ ତ ମତେ କେତା କେତା କରି ଖାଇଗଲଣି । ଏତେ କଥା କହିଲି – ଏତେ ବୁଝେଇଲି…

କୃଷ୍ଣ : ସବୁ କରିଚ, ଖାଲି ଗୋଟିଏ କଥା ଛାଡ଼ି…

ଲଳିତା : କ'ଣ ?

କୃଷ୍ଣ ( ଗୀତ )

ଢାଳେ ତ ଢାଳିଲୁ ନାହିଁ କୃପାସୁଧା ଝରକରେ । ପଦ ।
ଢକ୍କା ବାଜୁଥାଇ ବ୍ରଜେ, ଲଳିତାର ହୃଦାମ୍ବୁଜେ
କରୁଣା ଅଛି ବୋଲି ଯା'ନେଲି କେ' ତା' ହସ୍ତକରେ ।୧।

ଲଳିତା : କଣ ସବୁ ଏତେ କଥା କହିଯାଉଚ ?

କୃଷ୍ଣ : ମିଛ ତ କହୁନାହିଁ । ବ୍ରଜପୁରରେ ନାଗରୀ ପିଠା ହଉଚ ଯେ ଲଳିତା ହଉଚନ୍ତି ଅତି ଦୟାଳୁ—ଦୟାବତୀ ନାରୀ । ମୁଁ ଏତେ ଭାଗ୍ୟହୀନ, ମୋ' ବେଳକୁ ତାଙ୍କ ଦୟା ଭଣ୍ଡାର ଶେଷ ହୋଇଗଲାଣି ।

( ଗୀତ )

ଛୋଟାଇଲୁ ପଶ ନଳି, ତଳେ ପଡ଼ିଯିବା ଭଳି
ହେଲିନ ଯେ କୁନ୍ଦ କଳି ଦଶନା ଏ ସଙ୍କଟରେ ।୨।

ଲଳିତା : ନାଇଁ ନାଇଁ ଶ୍ୟାମସୁନ୍ଦର, ତମେ ଦୁର୍ବଳ ହୋଇ ବସୁ ବସୁ ତଳେ ଢଳିପଡ଼ିବାର ଅବସ୍ଥା ତମର ହେଲାଣି— ଆଉ ମୋର ତୁମ ପ୍ରତି ଦୟା ହଉନାହିଁ, ଏ ଅପବାଦ ତୁମେ ମତେ ଦିଅ ନାହିଁ ।

କୃଷ୍ଣ : ଅପବାଦ ନୁହେଁ ସଖି—ଇଏ ମୋର ତମ ପାଖରେ ଅଳି ।

( ଗୀତ )

ଢାଳିଦେଲେ ତୃଷିତ ଚକୋର ଚଞ୍ଚୁରେ ଶୀତ-
ଭାନୁ ଚନ୍ଦ୍ରିକାକୁ ବନ୍ଦ ଯାଏ କଣ୍ଟ ସଙ୍କଟରେ ।୩।

ଲଳିତା : (ହସି ପକେଇ) ଥାଉ, ମତେ ଆଉ ଏତେ ଝେଙ୍କାଝେଙ୍କ ଫୁସୁଲା ଫୁସୁଲି କର ନାହିଁ, ମୋ' ମନ ଅସ୍ଥିର ହଉଚ ।

କୃଷ୍ଣ : (ହସି) ତମ ମନ ଅସ୍ଥିର ନହେଲେ ମୋ ଅସ୍ଥିର ମନ କଥା ତୁମେ ବୁଝିବ କେମିତି—ତାକୁ ସ୍ଥିର କରିବ

କେମିତ ? ମୋ' ଭାଗ୍ୟ, ଏ କୁଞ୍ଜ ବନରେ ତମ ମୁହଁର
ଏ ହସ ମୋ' ପ୍ରାଣରେ ସଞ୍ଜୀବନୀ ସୁଧା ଢାଳିଦେଲା !

ଲଳିତା : ସଖି ଶ୍ରୀରାଧା ପ୍ରାସାଦରେ ଅଛନ୍ତି—ତୁମେ ଶ୍ରୀକୃଷ୍ଣ ଏଠି ଏ କଦମ୍ବବନରେ ଅପେକ୍ଷା କର । ମୁଁ ଏବେ ଗଲି ।

କୃଷ୍ଣ : କୁଆଡ଼େ ଯିବ ?

ଲଳିତା : ଆଉ କୁଆଡ଼େ—ତମରି କାମରେ ।

( ଗୀତ )

ଅତସୀ କୁସୁମ ସମ, ଶ୍ୟାମ ହେ ମୁଁ ଗଲିଣି । ପଦ ।
ଅଳି ଭ୍ରମର ନବଢ଼ ଅସହାୟ୍ଣ, ସେ' ଯେ ବଢ଼
ଅବଶ୍ୟ ତା' ଗ୍ରୁମୁରେ ମୁଁ ନିବେଦନ କଲିଣି ।୧।

ଲଳିତା : ଭ୍ରମର ଅଳିକୁ ମୁଁ ମୋ ଜୀବନର ସଙ୍ଗୀ କରି ତା' ପାଖକୁ ନେଇଯାଉଛି ।

କୃଷ୍ଣ : ମୁଁ ଜାଣେ, ତମ ପ୍ରାଣସଖି ତମ ନିବେଦନକୁ ନିଶ୍ଚୟ ସ୍ୱୀକାର କରିବେ ।

ଲଳିତା : ଆଉ ଯଦି ସେ...

କୃଷ୍ଣ : କ'ଣ ଆଉ ଯଦି ?

ଲଳିତା : ( ଗୀତ )

ଆରକତ କଲେ ମୁଖ ଅଖଣ୍ଡ ସୁଧାମୟୂଖ
ଆତୁର ସରବ ମୋର ଜୀଇଁଲେ ହିଁ ମଲିଣି ।୨।

ଲଳିତା : ମୋ' କଥା ଶୁଣି ଯଦି ସେ ମୁହଁ ବୁଲେଇ ନଏ—ତେବେ ମୋ' ମାନ ମହତ ସବୁ ଗଲା ବୋଲି ଜାଣ ।

କୃଷ୍ଣ : ନା, ନା, ସେ କେବେ ଏମିତି ଆଚରଣ କରିବେ ନାହିଁ ।

ଲଳିତା : ମୁଁ ଜାଣେ ତମ ମନ ଯାହା ଗୁହୁଁଚି । ଆଉ ଏ କଥା ବି ମୁଁ ଜାଣେ ଯେ ତମ ମନ ଦୋହନ ସୁଫଳ ନିଶ୍ଚେ ଫଳିବ । ମାତ୍ର ଶେଷ ଫଳ କଣ ହେବ, ସେ କଥା ସିଏ ଜାଣେ ତୁମେ ଜାଣ ।

( ଗୀତ )

ଅଧ ଅଧରରେ ସ୍ମିତ ଉଲ୍ଲାସି ହେଲେ ଲଳିତ
ଉଦ୍ଧବ ଏହାଟି ବୋଲି କୃପା କଲ୍ପବଲ୍ଲୀଟି ।୩।

[ ପ୍ରାସାଦ । ଶ୍ରୀରାଧା ଏକାକିନୀ ଅପେକ୍ଷା କରୁଥାନ୍ତି । ]

ରାଧା : (ମନକୁ ମନ) କାହିଁ ? କୁଆଡ଼େ ରହିଲା ସେ ? ତା' ବାଟ ଚାହିଁ ଚାହିଁ ମୋ' ଆଖିରୁ ପାଣି ମଲାଣି ।···କଣ କରିବି ? ବିଶାଖା କି ଚିତ୍ରାଙ୍ଗଦା କାହାକୁ କୁଞ୍ଜବନକୁ ପଠେଇବି ।···ନା, ଥାଉ । ସେମାନେ କେହି କିଛି ଏକଥା ଜାଣି ନାହାନ୍ତି । ଜଣାଇବି କାହିଁକି ? ଲୋକହସା ହେବି କାହିଁକି ?···ଏଇ ଲଳିତା ଆସିଲାଣି । ଓହୋ ! କି ଧୀରଗତିରେ ସେ ଆସୁଛି !···ଏଁ ! ଏ କଣ ? ସେ ହଳଦୀ ବସନ୍ତ ଚଢ଼େଇ ଦି'ଟା କୋଉଠୁ ଆସି ପାଚିଲା ସେପାଖ ଆମ୍ବ ଗଛରେ ଏ ଡାଳ ସେ ଡାଳ ହଉଛନ୍ତି । ତୁ ତ ଆସୁଥିଲୁ, ତାଙ୍କୁ ଦେଖି ତୁ କାହିଁକି ଅଟକି ଗଲୁ ?···ହଉ, ତୁ ଆ' । (ଲଳିତା ଆସିଲା) ଲଳିତା···ଲଳିତା !

ଲଳିତା : ଏଁ !

ରାଧା : (ଆଗ୍ରହରେ) ତୁ···ତୁ ଆସିଲୁ ଲଳିତା ?

ଲଳିତା : (କିଛି ନ ଜାଣିଲା ପରି) ତୁ କଣ ମତେ କହିଲୁକି ରାଧା ?

ରାଧା : ନାହିଁ, ତୁ କୁଞ୍ଜବନକୁ ଯାଇଥିଲୁ, ସେଠୁ ଆସିଲୁ ଯେ, ସେଇ କଥା ତୋତେ ପଚାରିଲି ।

ଲଳିତା : କୁଞ୍ଜବନରେ ତ ଘରଦ୍ୱାର କିଛି ନାହିଁ, ନ ଆସି ସେଠି ରହିଥାନ୍ତ କୋଉଠି ?

ରାଧା : ଲଳିତା !!

ଲଳିତା : ତୁ ଟିକିଏ ଘୁଞ୍ଚିଲୁ—ମୁଁ ବସେ ଏଠି ।

ରାଧା : ହଁ ସଖି, ତୁ ଥକିପଡ଼ିଚୁ, ବସ ଏଠି, ବସ ।

ଲଳିତା : ସେତିକିବେଳୁ ଯାଇ ଠିଆହୋଇଚି ଯେ—ଗୋଡ଼ ଭଣ୍ଡା ବନ୍ଧୁ ଚି—ତଳିପା ଫାଟି ଫାଟି ଯାଉଚି । (ଦୁହେଁ ବସିଲେ) ଆଉ—ଆଉ ରାଗରେ ମୋ ଗୁଣ୍ଡ ଭିତରେ ହା କରନ୍ତ ହୋଇଯାଉଛି ।···ନନ୍ଦରାଜାଙ୍କ ପୁଅ ବୋଲି ତେମେ ଇନ୍ଦ୍ର ଚନ୍ଦ୍ର ମାନବ ନାଇଁ !! (ଏସବୁ ଲଳିତାର ଛଳନା)

ରାଧା : (ଡରିଯାଇ) କଣ ହେଲା ସଖି···କଣ ହେଲା ?

ଲଳିତା : ( ଗୀତ )

ତୋ’ ଯେଣୁ ତମାଳଶ୍ୟାମ, ମୋ ମରମ କଷିଲା ରେ :
ତଥାପି ତ ତଳେ ହେଲେ, ତୋ’ ସ୍ନେହେ
ନ ରସିଲା ରେ । ପଦ ।

ତଳେ ବସନ ପ୍ରସାରି    ତୃଣ ଦଶନାନ୍ତେ ଧରି
କହିଲେ ହେଁ ଅନୁସରି, ରାଜ ତ ନ ଦଶିଲା ରେ ।୧।
ତହୁଁ କି ବିଷମଭାବ    ତର୍କିଲା ମୋ’ ଗୁହ୍ଟୁ ଶ୍ରବ-
ଣଟିକୁ ଘଟନ୍ତେ ଅବଧାନ ବିନା ହସିଲା ରେ ।୨।

ଲଳିତା : କଣ ମୁଁ ନ କହିଚି ତାଙ୍କୁ !! ତୋ’ ପାଇଁ ମୁଁ ଦାନ୍ତରେ ତିରଣ ଧରିବାଯାଏ କଥା ଯାଇଚି । ମାତ୍ର ତୋ’ ପ୍ରେମକୁ ସେ ଆଡ଼େଇଦେଲେ । ପୁଣି ମତେ ଯାହା କହିଲେ ନା !

ରାଧା : କଣ କହିଲେ ?

ଲଳିତା : କହିଲେ—ତୁ ଗୋଟାଏ ଯୁବତୀ ଝିଅ—ତରୁଣୀ ! ତୁ କାହିଁକି ଏକୁଟିଆ ଯମୁନାକୂଳକୁ ଆସିଲୁ ?

ରାଧା : ଲଳିତା, ସବୁ ଦୋଷ ମୋର ! ମୋର ପାଇଁ ତୁ ଏତେ ନିନ୍ଦା ଅପବାଦ ସହିଲୁ !

ଲଳିତା : ଛି ! ଏମିତି କଥା କହନ୍ତୁ । ତୁ ଆ, ଏଇଠି ମୋ' କୋଳରେ ମୁଣ୍ଡ ରଖି ଟିକଏ ଶୋଇପଡ଼—ମୁଁ ଟିକଏ ଆଉଁସି ଦିଏ । [କିଛିକ୍ଷଣ ନୀରବତା]

ରାଧା : ଲଳିତା···

ଲଳିତା : କଣ ଆଉ କହୁଚୁ ?

ରାଧା : ମାନଲି, ମତେ ସିଏ ଆଡ଼େଇ ଦେଲେ—ମତେ ପଚାରିଲେ ନାହିଁ । ମାତ୍ର ଏ ବ୍ରଜମଣ୍ଡଳରେ ତ ତୋର କେହି ଶତ୍ରୁ ନାହାନ୍ତି । ତୁ ତ ତୋ ବୁଦ୍ଧି ଆଉ କଥାରେ ସମସ୍ତଙ୍କୁ ବଶ କରି ରଖିଚୁ । ବ୍ରଜସୁନ୍ଦର ଏଭଳି କଥା ତୋତେ କହିଲେ କେମିତି ?

ଲଳିତା : ଯାଉନୁ ତାଙ୍କୁ ପଚାରିବୁ !

ରାଧା : କେଉଁ ଘା'ରେ କାହିଁକି ଆଉ ଚୂନ ଦଉଚୁ ?

ଲଳିତା : (ଚୁପ ହସ) ।

ରାଧା : ଲଳିତା, ଲଳିତା ! ତୁ ହସୁଚୁ ! କ୍ଷଣକ ଆଗର ତୋର ସେ ରାଗ ରୋଷ ଅଭିମାନ ଗଲା କୁଆଡ଼େ ?

ଲଳିତା : (ଖୁସିମନରେ) ରହ, ଦେଖି ଦେଖି—ମୋର ଏ ଦୁ'ପାପୁଲିରେ ଧରି ତୋ'ର ଏ ଚନ୍ଦ ମୁହଁଟିକୁ ମୁଁ ଥରେ ଭଲକରି ଦେଖେଁ—ତେଣିକି କଥାବାର୍ତ୍ତା ।

( ଗୀତ )

ରେ ଦୁଃଖିଧନ, ଦମ୍ଭ ଦେଖିବାକୁ ସିନା କଲି ଛଳ
ଦୁଃଖମୟ ନ କର ସରସ ମନ । ପଦ ।
ଦୁହେଁ ମୁଁ ଯିବାର ଜାଣି ହରି, ଦରିଦ୍ର ନିଧି ଲଭିଲା ପରି
ଦ୍ୱିଗୁଣ ଆଦରେ ପ୍ରମୋଦନଦରେ
ମଜ୍ଜି ଯେନଗଲେ କର ଧରି । ୧ ।

ରାଧା : ମୁଁ…ମୁଁ ସପନ ଦେଖୁନାହିଁ ତ ?

ଲଳିତା : ନାହିଁ, ଏଇଟା ନିଚ୍ଛକ ନିପଟ ସତକଥା ।

( ଗୀତ )

ଦୟା ଜର୍ଜର କରି ଚିତ୍ତ ଦନ୍ତବାସେ ରଖି ଦରସିତ
ଦଶବାର ଅନାମୟ ମୋତେ ଯେନାଯେନ କରି
ପଗୁରିଲେ ମିତ । ୨ ।

ରାଧା : ହୁଁ !! ତା'ହେଲେ ତୋ ହାତ ଧରି ତୋତେ ପାଖ୍ରେଟି ନେଲେ—ତୋତେ ଠେକାଠେକି କରି ମନଭୁଲ ମଧୁର କଥା ସବୁ କହିଲେ ! (ଲଳିତାର ଚତୁରପଣିଆର ରହସ୍ୟ ରାଧା ବୁଝିପାରିଲାଣି ।)

ଲଳିତା : କଥା କହିବାର ସେ ଯୋଉ ଠାଣିମାଣି, ମୁଁ ବୋଲି ବର୍ତ୍ତି ଆସିଲି । ତୁ ହୋଇଥିଲେ ଏକାବେଳେକେ ତରଳି ଯାଇଥାନ୍ତୁ ।

ରାଧା : ଆଚ୍ଛା, ମତେ ଏବେ କହୁଛୁଟି, ମୋ’ ଦମ୍ଭ କଥା କଣ ତୁ ସେତେବେଳେ କହୁଥିଲୁ ?

ଲଳିତା : ଠାକୁରୁ ଚଳପାଯାଏ, ଯିଏ ଗୋଟିଏ ଗୋଟିଏ ଭଙ୍ଗୀର ଅବତାର, ତାଙ୍କ ପାଖରେ ନିଜର ଦମ୍ଭ ନ ରଖିଲେ ତାଙ୍କୁ ପାରିହବ ?

ରାଧା : ନାଇଁ ସଖି, ସିଏ କଏ—ମୁଁ କେତେକର ! ତାଙ୍କ ପାଖରେ ମୁଁ କି ଦମ୍ଭ ଦେଖେଇବି ?···ହେଲେ ଲଳିତା, ମୁଁ ଏସବୁ କଥା ଜାଣିଥିଲି ।

ଲଳିତା : କୋଉ କଥା ? ଏଇ କୁଞ୍ଜରୁ ଫେରି ମୁଁ ଯାହା ଯାହା ତୋ’ ଆଗରେ କହିଗଲି ?

ରାଧା : ହଁ, ମୁଁ ସବୁ ଜାଣିପାରିଥିଲି । ମାତ୍ର ଆବାଲ୍ୟ ବନ୍ଧୁ ଆମେ, ତୁ ଏମିତି ଜଣେ ବୋଲି ମୁଁ ଏଯାଏଁ ଜାଣି ନଥିଲି ।

ଲଳିତା : କଣ ମୁଁ କେମିତି ଜଣେ ?

ରାଧା ( ଗୀତ )

ପ୍ରିୟ ସହି, ପରମାଦ ବଡ଼ ତୁହି ଗୋ,
ପାରୁ କେତେ ଛନ୍ଦେ ମୋହି ଗୋ । ପଦ ।

ପରମ ପଦରେ ନେଇ ଜାଣୁ ତୁ ବସାଇ
ପୁଣି ତହୁଁ ଜାଣୁ ତଳାତଳକୁ ଖସାଇ
ପାଶୋରାଇ ମନୁ ନାନା କଦନ ଲସାଇ
ପୀଡ଼ୁ ଅଶ୍ରୁ ବରଷାଇ ଗୋ । ୧ ।

ଲଳିତା : ଏଁ ! ଏଠି ତ ଆଉ କେହି ନାହାନ୍ତି—ଏ ସବୁକଥା ତୁ କାହାକୁ କହୁଚୁ ରାଧା ?

ରାଧା : ଆଉ ଯେତେବେଳେ କେହି ନାହାନ୍ତି, ତୋତେ ନକହି ଆଉ କାହାକୁ କହିବ ?

ଲଳିତା : ରାଧା !

ରାଧା : କଣ ?

ଲଳିତା : ସତରେ ତୁ ମତେ ଗାଳି ଦଉଚୁ ?

ରାଧା : ଦେବ ନାଇଁ ! ! ମୋର ପ୍ରିୟ ସଖି ତୁ ! ଆକାଶ କୁସୁମ ତୋଳିବା ବାହାନାରେ ମତେ ନେଇ ସର୍ଗରେ ବସେଇ ଦେଇ ପୁଣି ସେଠୁ ଟାଣି ଆଣି ରସାତଳରେ କଚୃଡ଼ି ଦଉଚୁ ? ମୁଁ କେତେ ସହିବ ?

ଲଳିତା : ରାଧା !

ରାଧା : ସମସ୍ତେ ଜାଣନ୍ତି, ତୋର ବୁଦ୍ଧି ପ୍ରଖର । ହେଲେ ତୁ ତ ଆଗରୁ ଏମିତି ମିଛେଇ, ଏମିତି ଫଣ୍ଡୁର ଖୋର ନଥିଲୁ ! ମୁଁ ଜାଣିଥିଲି, ଏ ଉଆସରେ ଜଣେ ଜଟିଳା, ଜଣେ କୁଟିଳା ଅଛନ୍ତି । ମାତ୍ର ଜାଣିନଥିଲି, ତାଙ୍କ ସାଙ୍ଗକୁ ତୁ ଆଉ ଜଣେ କୁଟିଳା ଆସି ଜୁଟିଲୁଣି । (ଟିକଏ ରହି) ହଉ, ବେଳ ହେଇଗଲାଣି, ଆ—କୁଞ୍ଜକୁ ଯିବା । ମୋର ସେଇ ଯୋଉ ଆକାଶିଆ ନୀଳରଙ୍ଗ ଶାଢ଼ୀ, ସେ ଶାଢ଼ୀଟା ତାଙ୍କ ଦେହର ନବ-ନୀରଦ-କାନ୍ତି ସାଙ୍ଗରେ ଠିକ୍ ମିଶିଯିବ । ମୁଁ ସେଇ ଶାଢ଼ୀ ପିନ୍ଧି

କୁଞ୍ଜକୁ ଯିବ । ଆଜ ମୋ କପୋଳରେ ଯୋଉ ଚିତା ତୁ ଆଙ୍କିବୁ, ତା' ମଝିରେ ଗୁଞ୍ଜର ଟିକଲ ଥାପିଦେବୁ । ହାତର ମୁଦଠୁଁ କାନର ଝୁମୁକା ଯାଏ ସବୁଠଁ ମଳ-ଚଥର ଶୋଭା ପାଉଥିବ । ଆ—ତଳକୁ ମୁହଁ ପୋତି ବସିଲୁ କାହିଁକି ? ଉ-ଠ୍ ! ଲଳିତା···ଲଳିତା···ତୁ କାନ୍ଦୁଚୁ ?

ଲଳିତା : ମତେ କାନ୍ଦ ଆସେ ନାହିଁ ।

ରାଧା : ଶୁହିଁଲୁ ମତେ—ମୋ ମୁହିଁକୁ ଶୁହିଁଲୁ !

ଲଳିତା : ଓହୋ ! କାହିଁକି ମୋ' ସାଙ୍ଗରେ ଏମିତି ଲାଗିଚୁ !

ରାଧା : କଣ ହେଲା ତୋ'ର ଲଳିତା ?

ଲଳିତା : ଜାଣିପାରୁନୁ କଣ ହେଲା ?

( ଗୀତ )

ଫାଟି ପଡ଼ିବାର ନିକୁଞ୍ଜ ସଞ୍ଚାର ଶ୍ରମୁଁ ମୋ ଚରଣ ତଳ
ଫଭୁରଖୋର ଆଖରକୁ ହେବାର ଏହି ଏକା ଏଥୁ ଫଳ
ରେ କିଶୋରି, ଫିଟିଗଲା ଯେ ସନ୍ଦେହ
ଫୁଲିଗଲୁ ଫୁଲଲାମରସିକା ଜାଣିପାରି ଶ୍ୟାମ ସ୍ନେହରେ ।୧।

ରାଧା : ଲଳିତା ! ତୁ ଏ ଦୋଷରେ ମତେ ଦୋଷୀ କରୁଚୁ ! ତୁ କଣ ଜାଣିନୁ ତୋ' ପ୍ରିୟସଖୀ ରାଧାକୁ ? ମୁଁ ପରା ତୋ'···

ଲଳିତା : ( ଗୀତ )

ଫନ୍ଦାଇ ନାନା ବନସ୍ତେ କହ୍ନ ଦନ୍ତେ ତୃଣ ଧରିବାର ଗଲା
ଫଟାକପାଳରେ 'କୁଟିଳ-ହୃଦୟା' ବୋଲାଇବା ଲେଖା ଥିଲା
ରେ କିଶୋର, ଫନ୍ଦା ଧନ ତୁ ତ ମୋର,
ଫରିଆଦ କାହିଁ ତୋ ନାମେ କରିବ
ନିନ୍ଦା କଲେ ପଛେ କର ।୨।

ଲଳିତା : କାଲିଠୁ ଗୋପଦାଣ୍ଡରେ ନାଗରା ବାଜିବ—ଲଳିତା ଗୋଟାଏ ମିଛେଇ କୁଟିଳ ବୁଢ଼ି ଝିଅ । ମୋର କିଏ ଅଛି, କାହା ପାଖରେ ଗୁହାରି ହେବାକୁ ଯିବ ? କୁଞ୍ଜ-ବନରେ କୃଷ୍ଣଙ୍କ ପଛେ ପଛେ ଧାଇଁ ମୋ ତଳିପା ଫାଟି ଫାଟି ଯାଇଛି ସିନା, ମାତ୍ର ତୋ'ପାଇଁ କୁଞ୍ଜବନକୁ ବାଟ ଫିଟିଯାଇଛି । ତୁ ଏବେ ତୋ' ନୀଳମଣିକୁ ତୋ' ପଣତ ତଳେ ଘୋଡ଼େଇ ରଖ—ତୋ' କୁଞ୍ଜଦ୍ୱାରକୁ ତୋ' ସପ୍ତସଖୀ ଜଗି ରହନ୍ତୁ । ମୁଁ ଯଦି କେବେ ସେ ଆଡ଼କୁ ପାଦ ବଢ଼େଇଛି, ତୁ ମତେ କହିବୁ—ତୁ ଗୋଟାଏ ମିଛେଇ ଝିଅ, "ତୁ କାହିଁକି ବୃନ୍ଦାବନକୁ ଆସିଚୁ ?" ମୋ' ମହତ ଦ'କଡ଼ା କରିଦବୁ ।

ରାଧା : ଲଳିତା, ଲଳିତା ! ତୁ ମତେ ତୋ ଦ'ହାତରେ ଯାହା ଦଣ୍ଡ ଦଉଚୁ ଦେ—ଏ ମର୍ମକୁ ବାଧିଲା ଭଳି କଥା କହନାହିଁ । କହୁ କହୁ ଦ'ପଦ କ'ଣ ଅଟାରେ—ଗେଲରେ କହିଦେଲି ! ତୁ ସହିପାରିଲୁ ନାହିଁ ?··· ତୋ' ପରି ବୁଦ୍ଧିମତୀ ଝିଅ···

( ଗୀତ )

ଝଚକ୍ଷଣାରେ···

ଶନା ତୋ’ ପ୍ରୀତି କେ ଗଢ଼ଅଛି ଜଗତରେ । ପଦ ।

ବୋଲିଦେଲ ସିନା ଗେଲେ ହସି   ବଶ୍ୱେ ତୋ ସମ କାହିଁ ବସ୍ମାସୀ
ବାନ୍ଧିବାକୁ ମୋ’ ମନ ତୁ ଫାଶି
ଶେଷରେ ମୋ ହୃଦନ୍ତର ଡୋରେ ଜଣାରେ ।୧।

ଲଳିତା : ସଂଜ ଗଡ଼ିଗଲିଣି, ଡେରି ହେଇଯାଉଚ, ତୁ କୁଞ୍ଜକୁ ଯା’ ।

ରାଧା : ଏଇଆ କହି ତୁ ମତେ ଭୁଲେଇଦବୁ !

( ଗୀତ )

ଜଣେ କଣେ ଯେ’ ଯାହାକୁ ସ୍ନେହେ,
ବଡ଼ ତା’ଠାରୁ ଜୀବନ ନୁହେଁ
ବଳ ତାହାଠାରେ ସିନା ସହେ
ବହିରଙ୍ଗେ ବୁଲୁଛନ୍ତି ଦେଖ ଅଗଣାରେ । ୨ ।

ରାଧା : ଯିଏ ସ୍ନେହରେ ଯାହାକୁ କଣା ବଙ୍କା କରେ, ତା’ଠୁ ବଳି ଆପଣାର ଆଉ କିଏ ଅଛି ? ଅରେ ନୁହେଁ, ଶହେବାର, ହଜାରବାର ମୁଁ ମୋ’ ଦୋଷ ମାନୁଚି । ତୁ ଟିକଏ ସକାଳର ସଜଫୁଟା ପଦ୍ମପରି ହସ ହସ ମୁହଁରେ ମତେ ଚାହିଁଲୁ !

ଲଳିତା : (ହସି ହସି) ଆଗଲୋ ଗୁଡ଼ି, ଗୁଡ଼ି ! ମତେ ଏମିତି ଭିଡ଼ି ଧରୁଚୁ କାଇଁକି—ମୋ’ ନିଃଶ୍ୱାସ ବନ୍ଦ ହେଇଯାଉଛି ।

ରହ, ମୁଁ ସଖୀମାନଙ୍କୁ ଡାକେ, ସେମାନେ ଶିଙ୍ଗାର ସଜ କରନ୍ତୁ ।

[ମଞ୍ଚ ଅନ୍ଧାର । ପୁଣି ଆଲୋକ ଜଳିଲା ବେଳକୁ ଦେଖାଗଲା ମଞ୍ଚରେ ଉଗ୍ର ସୁଶୋଭିତା ଶ୍ରୀରାଧା ।]

ଲଳିତା : ହଁ, ତିଳପୁଷ୍ପକୁ ଜିଣି ନୀଳରଙ୍ଗର ଶାଢ଼ୀରେ ସୁବର୍ଣ୍ଣ ପ୍ରତିମା । ଆଉ କି ଉପମା ଠା ମୁଁ ଦେବି ?

ରାଧା : କିଏ କହୁଛି ତୋତେ ଉପମା ଦେବାକୁ । ତୁ ଚାଲିଲୁ ।

ଲଳିତା : କୁଞ୍ଜକୁ ଯିବାପାଇଁ ତୁ ଯେତେ ଉଚ୍ଛନ୍ନ ହେଲେ ଭାବରୁ ମୁଁ ତୋତେ ସାଙ୍ଗେ ସାଙ୍ଗେ ନେଇ ପହଞ୍ଚେଇଦେବି ! ଏଠି ଆଉରି କେତେ କାମ ବାକି ଅଛି ।

ରାଧା : ପାଦର ମଞ୍ଜୀରଠୁଁ ମଥାର ଅଳକା ସବୁ ତ ଖଞ୍ଜା ହୋଇଛି—ଆଉ କି କାମ ?

ଲଳିତା : (ଚିକିଏ ରହି) ରାଧା !

ରାଧା : ଉଁ ।

ଲଳିତା : ମୁନିଋଷିମାନେ କୁଆଡ଼େ କହୁଛନ୍ତି, ତ୍ରେତୟାରେ ଯିଏ ସୀତା, ଦ୍ୱାପରରେ ସିଏ ରାଧା ।

ରାଧା : ଲଳିତାଲୋ ! ଏଇ ପଦଟିଏ କଥା କହି ତୁ ସାତଜନ୍ମ ପାଇଁ ମୋର ନମସ୍ୟା ହୋଇ ରହିଲୁ ।...ମାତ୍ର ଏଡ଼େ ଭାଗ୍ୟ କ'ଣ ମୋର ହେବ !...ଯିଏ ସୀତା ସେଇ ରାଧା...

ଲଳିତା : ହଉ ଗୁଡ଼—ଏ କଥାରେ ସାକ୍ଷୀ ସେଇ ସେତା ଆଉ ଦ୍ୱାପର !···ଆ, ଆମେ ଯିବା ।

ରାଧା : ପୂର୍ବଦଗକୁ ଦେଖିଲୁ, ସନ୍ଧ୍ୟାତାରା ବୁଡ଼ିଲାଣି ।

ଲଳିତା : ବୁଡ଼ି ନାଇଁ, ଲୁଚିଗଲାଣି । ଏଠି ଏ ନୀଳଶାଢ଼ୀ ଭିତରୁ ଆଉ ଗୋଟିଏ ସନ୍ଧ୍ୟାତାରାକୁ ଦେଖି ଆକାଶର ସେ ସନ୍ଧ୍ୟାତାରା ଲାଜରେ କୋଉଠି ଲୁଚିଗଲାଣି ।

ରାଧା : ମୁଁ ଏମିତି କ'ଣ ହୋଇଗଲି କି ? ଗୋପପୁରରେ ତ ଏତେ ଗୋପୀ ଅଛନ୍ତି, ତୁ ମତେ ସର୍ଗରେ ନେଇ ଥୋଉଚୁ କାହିଁକି ?

ଲଳିତା : ସେ କଥା ସେଇ ଗୋପୀନାଥ ଜାଣନ୍ତି । ତୁ ଆ' ।

(ଦୁହିଁଙ୍କର ପ୍ରସ୍ଥାନ)

---

[ଲଳିତା ଓ ରାଧା ବୃନ୍ଦାବନରେ
ଯାଇ ପହଞ୍ଚିଲେ । ଆଉ ଆଗକୁ
ନଯାଇ ଗୋଟିଏ ସ୍ଥାନରେ ଅଟକି-
ଗଲେ । ଅଦୂରରେ କୃଷ୍ଣ-କୁଂଜ ।]

ଲଳିତା : ଏଇଠି ସଖି—ଆଉ ଆଗକୁ ନ ଯାଇ ଏଇଠୁ ସେ କୁଞ୍ଜ ଭିତରେ ମୋହନସୁନ୍ଦରଙ୍କ ଅପୂର୍ବ ଭଙ୍ଗୀ ଥରେ ଆଖି ପୂରେଇ ତୁ ଦେଖିନେ, ତା'ପରେ କୁଂଜ ଅଭିସାର କରିବୁ । ··· ମଥାରେ ମୟୂର ମୁକୁଟ, କପାଳରେ ଗୋରଚନା ଚିତା, କଟୀରେ ପୀତ ଦୁକୂଳ, ହାତରେ ବଂଶୀ ଆଉ ଓଠରେ ମୃଦୁ ମଧୁର ହସ ! ମୋର ଭାଗ୍ୟ, ମୁଁ ତୋର ପାଇଁ ଏ ରୂପ ଦେଖିପାରିଲି ।

ରାଧା : ମୁଁ କିଛି ବୁଝିପାରୁନି ଲଳିତା—ମୋ ଆଖି ଆଗରେ ଏ କି ଅପୂର୍ବ ଶୋଭା ଖେଳଯାଉଛି ।

ଲଳିତା : ଏ ଶୋଭା କେବଳ ତୋ'ରି ପାଇଁଲୋ ରାଧା—ଏ ମୋହନ ମନୋହର ଭଙ୍ଗୀ କେବଳ ତୋ'ରି ପାଇଁ !

( ଗୀତ )

ଭଙ୍ଗୀ ଦେଖି ଏ, ଭ୍ରୂଲତାଲଭୁଜଙ୍ଗୀ ଭ୍ରମର ଜୀବ ସଙ୍ଗି । ପଦ ।
ଭାଗ୍ୟ ଏ ଜନଆଖି, ଜନନରତି ସଖି, ଜାଣରେ,
ଭରମି ନ ଯା' ତୁ ମନ୍ମଥ ବାଣରେ,
ଭୁଜପାଣିକୁ ଛନ୍ଦ ମୋ ଗଳେ
ଭଣ୍ଡେ ପଦକଞ୍ଜ ଖଞ୍ଜ ଧରଣୀତଳେ

ଭୂମଣ୍ଡନାରେ
ଭଲ ମାନୁଚ ଦେଖ, ମୁଖ ସୁଧା ମୟୂଖ
ଅଳକତଳ ଅଖଣ୍ଡିତ ରେଚନାରେଖ
ତିଳକେ ଦୃଷ୍ଟି ରଖ, ସଖିରେ, କ ହସେ ଚଳାଚଳ,
ଗୃରୁଚନ୍ଦ୍ରକ ଚୂଳ । ୧ ।

ରାଧା : ସତରେ ସଖି, ମୋ ପାଦ ଏଠି ମୋଟେ ସ୍ଥିର ରହୁନ । ପୁଣି ଦେଖ୍, ଏ ଭଅଁ ରଟା ମତେ ହଇରାଣ କରୁଚ ।

ଲଳିତା : ଭଅଁର ! ନାଇଁ ସଖୀ, ଖାଲି ଭଅଁର ନୁହେଁ—ଯମୁନା-କୂଳ ବନ ଉପବନରେ ଏବେ ବସନ୍ତର ମହୋତ୍ସବ ଲାଗିଗଲଣି !

ରାଧା : ଲଳିତା !

ଲଳିତା : ଗୋଟାଏ କଥା ମତେ କହିବୁ ରାଧା ?

ରାଧା : କ'ଣ ?

ଲଳିତା : ତୁ କେମିତି କ'ଣ କହି କୁଂଜ ଭିତରେ କିଶୋରଚନ୍ଦ୍ରଙ୍କୁ ଭେଟିବୁ···ମତେ କହ ।

ରାଧା : ମୁଁ—ମୁଁ ତାଙ୍କୁ କିଛି କହିପାରିବି ନାହିଁ । ଏ ମାଧବୀ ମାଳାଟି ପିନ୍ଧାଇଦେଇ ତାଙ୍କ ପାଦତଳେ ନିଜକୁ ଲୋଟାଇଦେବି ।

ଲଳିତା : ଦେଖ ବୃନ୍ଦା ମତେ ଆଜି କ'ଣ କହିଲେ ଜାଣୁ ?

ରାଧା : କ'ଣ ?

ଲଳିତା : କହିଲେ—ଶ୍ରୀରାଧା ପ୍ରକୃତି ସ୍ୱରୂପା—ଶ୍ରୀକୃଷ୍ଣ ପୁରୁ-ଷୋତ୍ତମ । ତୁମେ ଦୁହେଁ କେବଳ ଗୋପପୁରର ଗୋପୀ

ଗୋପାଳ ନୁହଁ—ବ୍ରଜଭୂମିର ବଙ୍କ କିଶୋର ନୁହଁ—ତୁମେ ଦୁହେଁ ପ୍ରକୃତି ଆଉ ପୁରୁଷ ।···ତୁ ଏବେ କୁଞ୍ଜକୁ ସଜ କର ଶ୍ରୀମତୀ । ତୁମ ଦୁହିଁଙ୍କ ପାଇଁ ବସନ୍ତ ତା'ର ସବୁ ଶୋଭାଶିରୀ ନେଇ ବୃନ୍ଦାବନକୁ ଆସିଛି । କୁଞ୍ଜ କୁଟୀରରେ ଆଜ ପ୍ରକୃତି ଆଉ ପୁରୁଷଙ୍କ ମହାମିଳନ—କୁଂଜ ବାହାରେ ଋତୁରାଜ ବସନ୍ତର ଲୀଳା—ମଳୟର ମୃଦୁ ପରଶ—ଫୁଲରେଣୁର ମହକ—କୋଇଲର କୁହୁ—ଆଉ ସୁଲଳିତ ସୁନ୍ଦର ବସନ୍ତ ଗୀତିକା :

( ଗୀତ )

ମିଳିତ ନାୟକଣ୍ଠ :

ମଧୁରେ, ମନ୍ଦ ମନ୍ଦ ହୋଇ ଗନ୍ଧବହ ପ୍ରସରିଲା
କଦମ୍ବ ନିକୁଂଜ ସୀମାରେ
ମଗ୍ନ ସେ କେ ରମଣୀ ଲୋକେ ଭାଷିଲେ ଇଷିମାରେ
ମିଳନ୍ଦ ଲତା ଦମ୍ଭବନିତା ବଦନେ ମିଶି ମାରେ
ମଣ୍ଡିତ ହେଲା ସେ ବନସ୍ଥଳ ମହାରଜତ ମହେନ୍ଦ୍ରମାଳ—
ମୟୂଖ ଶିଖିମୟୂ ମଞ୍ଜରୀ ବସର ସୁଷମାରେ । ପଦ ।

ମିଶିଲା ଚତୁର ଲୋଚନ ବାଣ— ରୁଦ୍ଧ ମଦନୁ ଲଭିଲା ତୃଣ
ମିଳିଲା ଶ୍ୟାମ ଗଉର ଦୁଇ ମନ
ମଧୁପ ଯୁବା ଲଭିଲା ଅବା ନବସରସୀରୁହ
ମାନସ ଅଙ୍ଗ ଭେଦ ପ୍ରସଙ୍ଗ ଭଙ୍ଗ ରଚିଲା ସ୍ନେହ
ମଉଳିଗଲା ଶେଷ ସାତ୍ତ୍ୱିକ ମୁକ୍ତନୟନ ସଂଖ୍ୟକଯାକ
ମଜ୍ଜାଇଦେଲା ଦୁହିଁଙ୍କ ମନ ମହାମୋଦପ୍ରବାହ । ୧ ।

[ନିଶି ଅତିକ୍ରାନ୍ତ ହେଲା । ଯମୁନା ପୁଳିନ ନବ ଅରୁଣାଲୋକରେ ଉଦ୍‌ଭାସିତ ହୋଇଉଠିଲା ।...ଶ୍ରୀରାଧା ଲଳିତାଙ୍କ ସହ ଗୋପାଙ୍ଗନାମାନେ ଯମୁନା ଘାଟରେ ମିଳିତ ହେଲେ । ମିଳିତ କଣ୍ଠରେ ଭାସିଆସିଲା ଜଗତପିତା ପରମେଶ୍ୱରଙ୍କ ବନ୍ଦନା ।]

( ଗୀତ )

ମିଳିତ କଣ୍ଠ :

କ୍ଷମାନୁକମ୍ପାଧର ହେ,
କ୍ଷୀରସାଗରସମ୍ଭବାକୁଚକୁମ୍ଭଯୁଗଳପରିରମ୍ଭ ଚତୁର ହେ । ପଦ ।
ଖଣ୍ଡିତଚଣ୍ଡବାଳ ମହାଖଣ୍ଡ ନବାରଣ ହେ
ଶ୍ରୁତିଶିର-ଅବତଂସାକୃତ ଶ୍ରୀଚରଣ ହେ
ମରାଳ ବିହରଣ, କରାର୍ଚ୍ଚିତ ଚରଣ
ଧରାଭାରହରଣ, ଚରାଚର ଶରଣ
ତରାବର କରଣ, ବରାବର ଚରଣ
ନଖାଂଶୁ ସୁରଗଣ, ଶିଖାଭରଣ ହେ ।୧।

[ସମାପ୍ତ]

---